# ବସନ୍ତ କୁମାରୀ ଶୋକ ।



ଶ୍ରୀମତୀ କୁନ୍ତଳା କୁମାରୀ ଦେଈ ।

# ବସନ୍ତକୁମାରୀର ସଂକ୍ଷିପ୍ତ ଜୀବନ ଚରିତ ।

କଟକ ନଗରର ପ୍ରାୟ ଶ୍ରୀରକୋଷ ପୂର୍ବରେ ଅବସ୍ଥିତ ବଡ଼ି ଗ୍ରାମରେ ସନ ୧୯୨୦ ମସିହା ଫେବୃଆରୀ ମାସ ୨୭ ତାରିଖରେ ବସନ୍ତକୁମାରୀ କରଣ କୁଳରେ ଜନ୍ମଗ୍ରହଣ କରିଥିଲା । ତାହାର ଜନ୍ମିତ ପିତାର ନାମ ଶ୍ରୀ ରାଧାକୃଷ୍ଣ ମହାନ୍ତ ଓ ଜନ୍ମିତ ମାତାର ନାମ ଶ୍ରୀମତୀ ମୋତା ଦେଈ, ତାହାକୁ ଅତି ଶୈଶବ କାଳରୁ ରାଧାକୃଷ୍ଣ ମହାନ୍ତଙ୍କ କନିଷ୍ଠ ଭ୍ରାତା ଶ୍ରୀ ନାରାୟଣ ମହାନ୍ତ ପୋଷ୍ୟ କନ୍ୟାରୂପେ ଗ୍ରହଣ କରିଥିଲେ ଓ ତାହାର ପୋଷ୍ୟ ମାତାର ନାମ ଶ୍ରୀମତୀ କୁନ୍ତଳାକୁମାରୀ ଦେଈ ଅଟେ । ସେ ଶ୍ରୀରବର୍ଷ ବୟକ୍ରମ ସମୟରେ ବାମେଇସାପୁର ନମ୍ବ ପ୍ରାଇମେରୀ ବିଦ୍ୟାଳୟରେ ଅଧ୍ୟୟନ କରିବା ସକାଶେ ଭର୍ତ୍ତି ହୋଇ ସନ ୧୯୨୯ ମସିହା ନଭେମ୍ବର ମାସରେ ବୃତ୍ତି ପରୀକ୍ଷାକୁ ଆସିଥିଲା । ଉପରୋକ୍ତ ନମ୍ବ ପ୍ରାଇମେରୀ ବିଦ୍ୟାଳୟର ଶିକ୍ଷକ ଶ୍ରୀ ଆଦିକନ୍ଦ ରାଉତରାୟ ତାହାକୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଶିକ୍ଷକଙ୍କର ଯତ୍ନ ଓ ପରିଶ୍ରମ ଦ୍ୱାରା ବସନ୍ତକୁମାରୀ ତାହାର ପ୍ରଖର ଓ ମେଧା ଗୁଣରେ ସେହି ଶୈଶବ ସମୟଠାରୁ ଯେଉଁ ଗୀତ ବା ପାଠ, ଏକବାର ବା ଦୁଇବାର ଶ୍ରବଣ କରେ ତାହା ଶୀଘ୍ର କଣ୍ଠସ୍ଥ କରିପାରୁଥିଲା ଏବଂ ଥରେ ମୁଖସ୍ଥ ହେଲେ ଆଉ କେବେଁ ଭୁଲୁ ନଥିଲା । ବସନ୍ତ ଦଶ-ବର୍ଷ ମଧ୍ୟରେ ଓଡ଼ିଆ ଓ ବଙ୍ଗଳା ଇତ୍ୟାଦି ସମସ୍ତ ପୁସ୍ତକ ଅତି ଉତ୍ତମରୂପେ ପାଠକରି ପାରୁଥିଲା । କୌଣସି ପୁସ୍ତକ ପଢ଼ିବାବେଳେ କୌଣସି ଜାଗାରେ ଅର୍ଥ ବୁଝି ନ ପାରିଲେ ସଙ୍ଗେ ସଙ୍ଗେ ପଗୁରି ତହିଁରେ ଅର୍ଥ ବୁଝୁଥିଲା ।

ଉପରୋକ୍ତ ବିଦ୍ୟାଳୟରେ ସନ ୧୯୨୯ ମସିହା ମଇମାସରେ ପୁରସ୍କାର ବିତରଣୀ ସଭା ହୋଇଥିଲା, ଉକ୍ତ ସଭାରେ ସିଦ୍ଧେଶ୍ୱର ପୁର ମାଇନରସ୍କୁଲର ହେଡ଼ମାଷ୍ଟର ଶ୍ରୀ ବାବୁ ବାଞ୍ଛାନିଧି ମିଶ୍ର

ସଭାପତିର ଆସନ ଗ୍ରହଣକରି ଥିଲେ ଏବଂ ଉକ୍ତ ସଭାରେ ଢଙ୍ଗି ଓ ଢମେଇସାହୁର ଗ୍ରାମର ସମସ୍ତ ଗ୍ରାମବାସି ଯୋଗଦେଇଥିଲେ । ଶିକ୍ଷକ ଅଦ୍ଵୈତ ଶ୍ରୀଗୋବିନ୍ଦ ଶତ୍ପତିଙ୍କ ଯତ୍ନରେ ପିଲାମାନଙ୍କୁ ଅନେକ ପ୍ରକାର ଗୀତ ଓ ଅଭିନୟ କରିବା ସକାଶେ ଶିକ୍ଷା ଦିଆ ହୋଇ-ଥିଲା । ବସନ୍ତକୁମାରୀ ଜଳଦେବତାରୂପେ ଅଭିନୟକରି ଓ ଗୀତ ଗାଇ ସେଦିନ ସଭାପତିଙ୍କୁ ଓ ଦର୍ଶକମାନଙ୍କୁ ମୁଗ୍ଧ କରି ଦେଇଥିଲା । ସଭାପତି ମହୋଦୟ ଏବଂ ଉକ୍ତ ବିଦ୍ୟାଳୟର ସେକ୍ରେଟେରି ଶ୍ରୀ ବାବୁ ଇନ୍ଦ୍ରମଣି ମହାନ୍ତିମାନେ ବିଶେଷ ସନ୍ତୁଷ୍ଟ ହୋଇ ତାହାକୁ ଅନେକ ଗୁଡ଼ିଏ ପୁସ୍ତକ ଉପହାର ଦେଇଥିଲେ । ତାହାର ଦିନ ଦିନ ଜର ତଥା ଖାଇବା ବେଳକୁ ଏ ହୃଦୟରେ ଶେଲବିଦ୍ଧ ହେଉଅଛି । ତାହାକୁ କ୍ରମିରୋଗ ଆକ୍ରମଣ କରିବାରୁ ଭଲକରିବା ନିମନ୍ତେ କଟକ ଆଣିଥିଲି । କବିରାଜ ଓ ଡାକ୍ତରମାନଙ୍କୁ ଦେଖାଇ ଔଷଧ ଖୁଆଉ ଥିଲି, କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା । ମାଘ ଶୁକ୍ଳ ଗୃହ୍ଣୀ ତା୨୧ରିଖ ମଇମାସ ସନ ୧୯୩୦ ମସିହା ବୁଧବାର ରାତ୍ର ଘ ୯ ଣ୍ଟା ସମୟରେ କଟକ କୁସୁନପୁର ବଙ୍ଗାଳି ସାହି ବସା-ଘରେ ହଠାତ୍ ନିଷ୍ଠୁର କାଳ ଆସି ତାହାର ଜୀବନ ପ୍ରଦୀପ ନିର୍ବାପିତ କରିଦେଲା ।

ଗ୍ରାମ — ଢଙ୍ଗି
ପୋ: ଅ: ଷାରବାଟି,
ଥାନା: ସଦର,
ଜି, କଟକ ।
ତା୧୯–୧୨–୧୯୩୦

ଶ୍ରୀମତୀ କୁନ୍ତଳାକୁମାରୀ ଦେଈ

# ବସନ୍ତ କୁମାରୀ ଶୋକ ।



ସତେ କି ଚଲି ମାଆ ତୋର ମର୍ତ୍ତ୍ୟ ଲୀଳା
ସଂସାରୁ ଯାଇଛୁ ସରି,
କେତେ ଦିନ ଯାଏ ଏ ଦୁଃଖିନୀ ମାତା
କାନ୍ଦିବ ଝୁରି ଝୁରି । ୧ ।

ଏତିକ କଥା ତୋର ଥିଲା ମନେ ପଶି
ମୋ ହୃଦେ କାଳି ଲଗାଇ,
ଚିରଦିନକୁ ତ ଦେଇଗଲୁ କଷ୍ଟ
ଶୋକ ସାଗରେ ଭସାଇ । ୨ ।

ଜାଣିତ ନଥିଲି ଦଗା ଦେବା ପାଇଁ
ଆସିଥିଲୁ ସଂସାରକୁ,
ଜାଣିଥିଲେ ଗଲେ ଲଗାଇ ଧନ୍ତି ତ
ତେ ଧରି ବକ୍ଷଧରକୁ । ୩ ।

ଠକ ଦେଇ ମତେ ଚାଲିଗଲୁ ଚାହିଁ
ଦେଖିଲି ନାହିଁ ନୟନେ,
ହାୟରେ ବିଧାତା ଏ ଦଣ୍ଡ ଦେବାକୁ
ପାଞ୍ଚିଥିଲୁ ତୋର ମନେ । ୪ ।

କେଉଁ ଦୋଷ ମୋର କରିଥିଲା ବସ*
ନିଦାରୁଣ ଦୁଃଖ ଦେଲୁ,
ଦେଲୁ ଏତେ କଷ୍ଟ ନଥିଲା ମୋ ଚିନ୍ତା
ଶେଷେ ତା ଜୀବନ ନେଲୁ । ୫ ।

ନ ଜାଣଇ ପାପ ନ ଜାଣଇ ପୁଣ୍ୟ
ବାଳୁତ କନ୍ୟା ମୋହର,

---

* ବସନ୍ତର ଛୋଟଭାଇ ବସ ।

ଏହି କଷ୍ଟ ତାର ଭାଗ୍ୟରେ ଲେଖନ
କର୍‌ଥିଲୁ ମନେ ସ୍ଥିର । ୬ ।
ତୋ ଦାରୁଣ ଛବି ନସହିବ ବୋଲି
ମୋହର ନେତ୍ର ଅଗ୍ରତେ,
ବହି ନେଇ ମା ଲୋ ଏକାନ୍ତ ଗୃହରେ
ଦଣ୍ଡଦେଲା ବିଧି ମତେ । ୭ ।
କି ଅସହ୍ୟ ଦୁଃଖ ଭୋଗି ଅଛୁ ତୁହି
ପଡ଼ିଣ ରୋଗ ଶଯ୍ୟାରେ,
ଚକ୍ଷୁ ଦୁଇ ଗୋଟି ବୁଜି ଦେଇ ତୁହି
କି ଭାବୁ ଥାଉ ଅନ୍ତରେ । ୮ ।
ଅବୋଧ ମନ ଯେ ବୁଝେ ନାହିଁ ମୋର
ଉଠାଇ ଦିଏ ଚାଅଲେ,
ଅମୃତ ବଚନ ଢାଳି ଦେଇ କର୍ଣ୍ଣେ
ଶାନ୍ତି ଦେଇ ମୋ ହୃଦରେ । ୯ ।
କାଳକ ରୋଗକୁ ଲୁଚାଇ ରଖିଲୁ
ଶେଷେ ଏ କଷ୍ଟ ପାଇଲୁ,
ଜନମି ସଂସାରେ କେଉଁ ସୁଖ ଅବା
ଜୀବନରେ ଭୋଗ କଲୁ । ୧୦ ।
ମା ଆ ତୋର ସୁଖ ସନ୍ତୋଷ ବିଧାନେ
ନେଇଥିଲି କଟକକୁ,
କଏ ଜାଣି ଥିଲା ଦାରୁଣ ବିଧାତା
ବହିବ ଏହି ଦଣ୍ଡକୁ । ୧୧ ।
ଧୂଳିରେ ଧୂସର ହୋଇଣ ଗଡ଼ିଲା
ତୋର ସୁକୁମାର ତନୁ,
ନୋହିଲା ମରଣ ତୋ କଷଣ ଦେଖି
ପାଶୋର ଯିବ କି ମନୁ । ୧୨ ।

ସ୍ତ୍ରୀବଦନ ପଦ୍ମ କବିରାଜ ତୋତେ
ଆସୁଥିଲେ ଦେଖିବାକୁ,
ଶେଷ ମୁହୂର୍ତ୍ତରେ ଡ଼କାଇଲି କେତେ
ନ ଆସିଲେ ସେ ପାଶକୁ । ୧୩ ।

ଶୁଣି ତୋ କରୁଣ ଧ୍ୱନି ଶ୍ରବଣରେ
କର୍ଣ୍ଣ ହୋଇଲା ବଧିର,
ନିର୍ଜ୍ଜନ ଗୃହରେ ଛାଡ଼ି ଦେଇ ତୋତେ
ହୋଇଲେ ସର୍ବେ ଅନ୍ତର । ୧୪ ।

ଏହି ସୁଖ ତୋର ଦେଖିବି ବୋଲି କି
ମନାସି ଥିଲି ଅନ୍ତରେ,
ଆଉ ଏ କଳଙ୍କି ପରାଣ ମୋହର
ରହିଛି କେଉଁ ସୁଖରେ । ୧୫ ।

ଯା ଯୋଗୁ ହୃଦରେ ମନାସୁଣ ଥିଲି
କୋଟି କୋଟି ଦେବତାଙ୍କୁ,
ତାର ଏହି ଦଶା ଘଟିଲା କି ଶେଷେ
ପାଇଲୁ ପ୍ରାଣ ଦଣ୍ଡକୁ । ୧୬ ।

ପୁଣି ଏ ପାପିନୀ ଗୁହାରି କରିଲା
ତୋ ଜୀବନ ପରିମାଣେ,
ଏହି ଅନୁଭବ କରିବା ସକାଶେ
ଲାଗିଥିଲି ପ୍ରାଣେ ପଣେ । ୧୭ ।

ଦୁଃଖାନଳେ ପଡ଼ି ଦୁଃଖିନୀ ଜନନୀ
କେତେ କଷ୍ଟ ନ ସହିବ,
ଏହି କଥା ମୋର ଭାଗ୍ୟରେ ଲେଖିଣ
ଥିଲା କି ପୋଡ଼ା ଦଇବ । ୧୮ ।

ପାଞ୍ଚୁ ଥିଲି ମନେ ତୋ ସଙ୍ଗେ ମାଆ ଲୋ
ଛାଟି ନେବି କଷ୍ଟଦିନ,

ନବ କୁନ୍ତି ପାଟେ    ପଞ୍ଚାଭଣ ପଶ
ଜୀବନେ ଦେଲୁ ଭଷଣ । ୧୯ ।
ସବୁ ମନୋରଥ    ମୋ ହୃଦକମଳ
ଝଡ଼ାଇଲୁ କ୍ଷଣକରେ,
ପ୍ରାପିଙ୍ଗ ଜଣ୍ଠାରୁ    ଝଂବାର ହୋଇଣ
ରହିଲୁ ଯାଇଁ ସ୍ୱର୍ଗରେ । ୨୦ ।
ଜନମିବୁ ଯେବେ    ଏ କଳିଯୁଗରେ
ପୁଣି ସେ କାହା ଗର୍ଭରେ,
ମୋ ଘର ଲକ୍ଷ୍ମୀ    ନ ଥାଉ ସେ ଗୃହେ
ଜଣାଇବୁ ପ୍ରଭୁଠାରେ । ୨୧ ।
ତୁହି ତୋ ଜୀବନେ    ଦେଇଅଛୁ କଷ୍ଟ
ଭାବୁଛି ଏବେ ମନରେ,
ଔଷଧ ପେଇଲା    ବେଳେ ରାହୁପର
ବସଇ ଯାଇଁ ପାଶରେ । ୨୨ ।
ସେହି ମୁହୂର୍ତ୍ତରେ    ଘୁରୁ ଚକ୍ଷୁ ସିନା
ଏକଇ ହୋଇଣ ଥାଇଁ,
ଟେକିଲେ ମୋ ଓଷ୍ଠ    ଚେତେ ଧରି ଦାନ୍ତ
କଣ୍ଠରେତ ନ ଶୁଣଇ । ୨୩ ।
ଦୁଃଖେ କୋଡ଼ ହୋଇ    କାନ୍ଦୁକ ଆରତେ
ଶିବଙ୍କୁ ଡାକି ବକଲେ,
ପଥରୁ କଠିଣ    ଅଟେ ମୋର ଚିତ୍ତ
ତରଳି ନ ଗଲା ବଳେ । ୨୪ ।
ଅମୃତ ଖଣ୍ଡିବା    ପାଇଁ କି ଲୋ ମାଆ
କେହି ନ ଥିଲେ ତୋ ପାଇଁ,
କିବା ମୋହ ଦୋଷ    ପୁଣ୍ୟାକର ମଧେ
ବଚନ୍ତି ଶୁଣିଲେ ନାହିଁ । ୨୫ ।

ପାପୀ ବୋଲି ଲୋକେ କରୁଥାନ୍ତି ଘୃଣା
ଧଇଲୁ ମୋର ଆଶ୍ରୟ,
ସେହି ଦୋଷୁ ପୁଣି ତୋ'ହଠାରେ କଲେ
ଦାରୁଣ କୋପ ଉଦୟ । ୨୬ ।
ମନାସିଲେ ଶିବ ଜନ ଶତ ଅନ୍ତୁ
ଦଅନ୍ତି ବାଞ୍ଛିତ ଫଳ,
ମୋର ବାଞ୍ଛା ପୂର୍ଣ୍ଣ ହୋଇଲା ଅଚିରେ
ମନାସିବା ପ୍ରତି ଫଳ । ୨୭ ।
କନେକ ପାଖରେ ନ ଶୋଇଲେ ମୋର
ନିଦ ନ ଆସେ ଚକ୍ଷୁକୁ,
ଏବେ ମୋତେ ଛାଡ଼ି ରହିଲୁ ଲୋ ମାଆ
ଆବୋରି ବାଲି ଶଯ୍ୟାକୁ । ୨୮ ।
ତୋ ସ୍ନେହକୁ ମନେ ଭାବି ଥିଲି ପରା
ପୂର୍ବ ସୁକୃତର ଫଳ,
ସବୁ ସୁଖ ଶାନ୍ତି ଏଡ଼ି ଦେଇ ମୋର
କରିଥିଲି ହୃଦେ ମୂଳ । ୨୯ ।
ଶେଷେ ଅମୃତରୁ ବିଷ ବାହାରିବ
ଏ କଥା ଜାଣି ନ ଥିଲି ।
ମୋର କଷ୍ଟ ଶେଷେ ଜାଣିବୁ ବୋଲିଣ
କରିଥିଲି ଗଳା ମାଳି । ୩୦ ।
ଭାବିଥିଲୁ ମନେ ମୋ ଗର୍ଭରୁ ଜାତ
ହୋଇଥିଲୁ ବୋଲି କରି ।
କହୁଥିଲା ଯିଏ ବିଶ୍ୱାସ ନ ଯାଇଁ
ସତ୍ୟରୁ ମୋ କର ଧରି । ୩୧ ।
ମୋର କାମେ ମନ କହୁଥିଲେ କିଏ
କହୁ ଅସି ମୋ କର୍ଣ୍ଣରେ ।

ସେ କଥାକୁ ମନେ ବିଶ୍ୱାସ ନ ପାଉଁ
ଧରଇ ତୋତେ କୋଳରେ । ୩୨ ।
ମୋ କ୍ଷୁଦ୍ର ପରାଣ କେତେ ଦବା ଜାଣି
ଉଚ୍ଛୁଳି ଜାତ ପଡୁଛି,
ଆଶା ମେଣ୍ଟାଇବା ପାଇଁକି ପରାଣ
କେତେ ଦୁଃଖରେ ସହୁଛି । ୩୩ ।
ବୃଥା ଭାବନାରେ ପଡ଼ି ଏହି ମନ
ଭୁଲିଯାଏ ଶୋକ ଶୋଷ,
ପରିଣାମେ ଆଶା କି ଦୁଃଖେ ପୂରଣ
ହୋଇଲା ସିନା ନିରାଶ । ୩୪
କି କୁହୁକ ମାୟା ଦେଖାଇଲୁ ମୋତେ
ନୀତ ମୋ ହୃଦ ମଧ୍ୟରେ,
ସେ ମାୟା ଦେଖି ମୁଁ କେବେ ସୁଖେ ହସେ
କେବେ କାନ୍ଦେ ଜୀରବରେ । ୩୫ ।
ତୋର ରୂପଛଟା ଲାବଣ୍ୟ ମୂରତି
କରିଛି ହୃଦେ ମୋ ବାସ,
ଶତ ଜନ୍ମ୍ୟା କବା ଶତ ବୃଦ୍ଧ ହେଲେ
ନ ଭୁଲିବି କେବେ ବସ । ୩୬ ।
କୁଆଁର ପୂର୍ଣ୍ଣିମା ଜହ୍ନ ଆଲୁଅରେ
ଆଉ କେ ଖେଳିବ ବସି,
ତୋର ଗୀତ ବୋଲି ଚନ୍ଦ୍ରମା ମୁଖତ
ସବୁ ବେଳେ ଯାଏ ହସି । ୩୭ ।
ରଜସଙ୍କରାନ୍ତି— ବେଳେ ଆଉ ସଜ
କାହାକୁ କରିବ ମୁହିଁ,
ସେହି କଥା ଭାବି ଦିନ ରାତି ମୋର
ଚକ୍ଷୁରେ ତ ନିଦ୍ରା ନାହିଁ । ୩୮ ।

ଶ୍ରୀ ପଞ୍ଚମୀ ଦିନ     କେତେ କେତେ ପିଲା
ସଙ୍ଗେ ବୋଲୁ ଥାଉ ଗୀତ,
ମାଁ ତୋର ବୀଣା —     ବୀଣାସ୍ୱର ମୋର
ହୃଦୟେ ହୁଏ ଅଙ୍କିତ । ୩୯ ।
ବୋଲୁ ଥାଉ ଗୀତ     ହାର ମୋନଅରେ
ଗାଳି ଦେବ ବୋଲି ମୁହିଁ,
ଏଣୁ ତେଣୁ କଥା     ପକାଇଣ ତୁହି
ମନକୁ ଦେଉ ଭୁଲାଇ । ୪୦ ।
ଦିନ ଦିନ କଥା     ମନେ ପଡ଼ି ଗଲେ
ପରାଣ ହୁଏ ଆକୁଳ,
ପାଠ ପଢ଼ି ଆସି     ଭାତ ଖାଇବାକୁ
ଲଗାଉ ଥାଉ ଜଞ୍ଜାଳ । ୪୧ ।
ନ ବାଢ଼ିଲେ ଭାତ     ଧରି ମୋ ପଣନ୍ତ
ପଡୁ କାନ୍ଦୁଡ଼ି ହୋଇଣ,
ସେ ଶୁଖୁ ବଦନ     ନେତ୍ରେ ଅନ ଅନ
ଲୋତକେ ହୁଏ ପୂରଣ । ୪୨ ।
ଦିନେ ଛେନା ଦୁଧ     ନ ଖାଇଲୁ ବୋଲି
ହାତ ଧରି ଟାଣି ନେଲି,
ଯାଅ ମୋର ଘରୁ     ବୋଲି କରି ତୋତେ
ବାରି ଅଡ଼େ ଛାଡ଼ି ଦେଲି । ୪୩ ।
ସେହି ଦିନ ତୁହି     କାନ୍ଦି କରି ମୋତେ
କହିଲୁ ଏହି ବଚନ,
ନ ଖାଇବି ଦୁଧ     ବୁଢ଼ି ମୁଁ ମରିବି
ପଡୁ ଅଛୁ ଏବେ ମନ । ୪୪ ।
ଶୁଣି ତୋ ବଚନ     ଶତ ଅଶ୍ରୁ ଧାରି
ବହିଲା ନେତ୍ରୁ ମୋହର,

କାନ୍ଦ କର ତୋତେ                    କାଖେଇବି ବୋଲି
ହୋଇଲି ମନ ମୋହର । ୪୫ ।
ତୋତେ ଯେବେ ବନେ                    ଶୋଇଥିଲି ମୁହିଁ
ଦେଖିଲି ଯେ ସ୍ୱପନରେ ।
କଣ୍ଟକ ବନରେ                    ଗ୍ଲଲି ଯାଉଁ ଯାଉଁ
ବୁଡ଼ି ଯାଉଛୁ ନଈରେ । ୪୬ ।
ଦେଖିଣ ସ୍ୱପନ                    କାନ୍ଦଲି ବକଲେ
ଉଠି ବୁଝାଇଲୁ ମୋତେ ।
ସ୍ୱପନର କଥା                    ସତକ ହୁଅଇ
କାହିଁକ ଯାଉ ପରତେ ? । ୪୭ ।
କ ସୁନ୍ଦର ଖାଣ୍ଟି                    ବୁଦ୍ଧି ଥିଲା ତୋର
କେତେଡ଼ ବଚକ୍ଷଣ କଥା ।
ମନେ ପଡ଼ିଲେ ତୋ                    ଖାଣା-ଜଣା ଭଷା
ଦଅଇ ଦାରୁଣ ବ୍ୟଥା । ୪୮ ।
ପାଠଶାଳାକୁ ତୋ                    ଯିବାପାଇଁ ବନେ
ମାନ ତ ନ ଥାଏ ହେଲା,
ଅକୂଳ ସାଗରେ                    ବୁଡ଼ିଛୁ କ ? ମା ତୋ
ତୋହର ଜୀବନ ଭେଲା । ୪୯ ।
ଅରେ ମାନ ଯାହା                    ଦେଖୁ ଶୁଣୁ ତାହା
ମନେ ରଖୁ ଅକ୍ଲେଶରେ ।
ହୈମବତୀଙ୍କ*  ସଙ୍ଗେ                    ମାଉ ନାନାରଙ୍କେ
ଖେଳୁ ଥାଉ ଅଗଣାରେ । ୫୦ ।
ପଢ଼ା ଶୁଣା ଗୁଡେ                    ତୋ ସମାନେ କେହ
ନ ଥିଲେ ସଙ୍ଗ ପଢ଼ୁଆ ।

* ବସନ୍ତର ଜ୍ୟେଷ୍ଠା ଭଗିନୀ ।

ମିଳିମିଶି ଚଳୁ   ସବୁରି ସଙ୍ଗରେ
ନ ଥିଲୁ ତଳେ ସର୍ବସ୍ୱ । ୫୧ ।
ଶୁଣି ତାଙ୍କ କାହା-   ଠାରୁ ବଡ଼େ ତୋର
ଖଳ ବୁଦ୍ଧି ପରିଚୟ ।
କେଣୁ ହେଉଥିଲୁ   ସମାଜରେ ତୁହି
ସବୁରି ଆଦରଣୀୟ । ୫୨ ।
ପ୍ରତିଦିନ ରାତେ   ସ୍ୱପନ ଦେଖୁଛୁ
ତୋର ଲାବଣ୍ୟ ରୂପକୁ ।
ଆଉ କେଉଁ ଆଶା   ଲାଗି ତୁ ଆସୁଛୁ
ନିତ ନିତ ମୋ ଠାବକୁ । ୫୩ ।
ମାଆ ତୁ ଯାଇଛୁ   ଯେଉଁ ଦେଶକୁ ତ
ବାହୁଡ଼ି ନ ଆସେ କେହି ।
ପ୍ରତିଦିନ ରାତେ   କପାଇଁ ଆସୁଛୁ
ମନେ କେଉଁ ଆଶା ବହି । ୫୪ ।
ଏବେ କି ସନ୍ତାପେ   କଟାଇବି କାଳ
କେମନ୍ତେ ସରିବ ଦିନ ।
ମୁଁ ହତ ଭାଗିନୀ   ତୋ ପରି ସନ୍ତାନ
ଯେହ୍ନ ସାରନ୍ତି କ ଦିନ । ୫୫ ।

—※:୦:※—

## ବିଳାପ ।

ନିଷ୍ଠୁର ବିଦ୍ଧ ବିଧାତା,
ମୋହଠାରେ ଏତେ କରି ଅନ୍ତ୍ରନ୍ତା । ରେ ବିଧିଧାତା ।
ମୋତେ ଦେଇଗଲୁ ଘୋର ଶନ୍ତା । ରେ ବିଧିଧାତା । ୧ ।
ପୁଅ ଝିଅ କରିଥିଲୁ,
ତାଙ୍କଠାରେ ଦିନ ସାରିବ ବୋଲି । ରେ ବିଧିଧାତା ।
ଶେଷେ ଗଳା କାଟିଲୁ ମୋହର । ରେ ବିଧିଧାତା । ୨ ।

ଦେଇତ ନ ଥିଲୁ ମୋତେ,
ମାଗିତ ନ ଥିଲ ମୁଁ ଦିନେ ତୋତେ । ରେ ବଧିଧାତା ।
ତୋର ସଭ ବଳଲା କେମନ୍ତେ । ରେ ବଧିଧାତା । ୩ ।

ସ୍ୱପନରେ ସୁଦ୍ଧା ଦିନେ,
ଦୁଅ ଝିଅ ପାଇଁ ନ ବାଞ୍ଛେ ମନେ । ରେ ବଧିଧାତା ।
ଦିଅ ଦେବତା ନ କରେ ଦିନେ । ରେ ବଧିଧାତା । ୪ ।

ଘରଠାରୁ କରିଥିଲି,
ମୋ ଦିନ ସୁଖରେ ସରିବ ବୋଲି । ରେ ବଧିଧାତା ।
ତହିଁରେ ହେଲୁ ଭଗାରି । ରେ ବଧିଧାତା । ୫ ।

ମୋ ହୃଦ ଗଳାମାଳାକୁ,
ହରାଇ ନେଲୁ ତ ଅକାଳେ ତାକୁ । ରେ ବଧିଧାତା ।
ଏବେ ନେଇ ଯା ମୋର ପ୍ରାଣକୁ । ରେ ବଧିଧାତା । ୬ ।

ବସନ୍ତ ତୋ ଜନ୍ମଦିନୁ,
ସବୁ କଷ୍ଟ ଯାଏ ପାଶୋରି ମନୁ । ମୋ ବସମ୍ବାଲୀ ।
କାଲ କାଟଇତ ସେହି ଦିନୁ । ମୋ ବସମାଲୀ । ୭ ।

କେ ଜାଣି ଗ୍ଭରି ବରଷ,
ତୋତେ ଯେବେ ଦିନ କରିଲି ଶେଷ । ମୋ ବସମାଲୀ ।
ତହୁଁ ରୋଗଣୀ ହେଲୁ ଅଶେଷ । ମୋ ବସମାଲୀ । ୮ ।
ମୋର ପ୍ରାଣର ଶଙ୍ଖାଳୀ,
ଯେବେ ଗଲୁ କଏ ମୋ ଗଳାମାଳୀ । ମୋ ବସମାଲୀ ।
ମୋର ମୁଖେ ଦେଇଗଲୁ କାଳି । ମୋ ବସମାଲୀ । ୯ ।
ତୋହର ପିତା ମାତାକୁ,
ବାତ୍ସଲ୍ୟ ମମତା ଦେଖାଇ ତାଙ୍କୁ । ମୋ ବସମାଲୀ ।
ଅନ୍ଧ ଅନ୍ଧୁଣୀ କଲୁ ଶେଷକୁ । ମୋ ବସମାଲୀ । ୧୦ ।

ଶୋଇଥିଲେ ପାଖରେ,
ମିଠା କଥା କେତେ କହୁ କାନରେ । ମୋ ବସମାଲୀ ।
ଟିକ୍ରେ ବସି ଯାଉ ମୋ କୋଳରେ । ମୋ ବସମାଲୀ ।୧୧।
ବାପାଙ୍କ ସଙ୍ଗରେ ଭାତ,
ନ ଖାଇଲେ ଶାନ୍ତ ନ ହୁଏ ଚିତ୍ତ । ମୋ ବସମାଲୀ ।
କେତେ ବୁଝାଇ କହେ ମୁହିଁତ । ମୋ ବସମାଲୀ । ୧୨ ।
ପୁଣି ଖାନ୍ତ ବଢ଼ା ହୋଇ,
ସଙ୍ଗରେ ଖାଇଲେ ଶାନ୍ତ ଲାଗଇ । ମୋ ବସମାଲୀ ।
କେବେ ଶୋଇବୁ କୋଳରେ ଯାଇଁ । ମୋ ବସମାଲୀ । ୧୩ ।
ସବୁ କଥାରେ ଜଞ୍ଜାଳ,
ଅବୁଝା ହୋଇଲୁ ବେଳକୁ ବେଳ । ମୋ ବସମାଲୀ ।
କୁମି ହୋଇଲା ତୋହର କାଳ । ମୋ ବସମାଲୀ । ୧୪ ।
କୋଡ଼ ବନାରୁ ତଳରେ,
ବଟନ ବସ ଯାଉ ନାହିଁ ଭୂମିରେ । ମୋ ବସମାଲୀ ।
ଏବେ ଶୋଇଲୁ ବାଲି ଶଯ୍ୟାରେ । ମୋ ବସମାଲୀ । ୧୫ ।
ଗୁଣ୍ଡିରେତ ଚନ୍ଦନଥର,
ଶେଯ ଝାଡୁଥାଉ ମୋର ହସ୍ତର । ମୋ ବସମାଲୀ ।
ଧୂଳି ନ ଲାଗେ ଦେହେ ତୋହର । ମୋ ବସମାଲୀ । ୧୬ ।
ଔଷଧ ଖାଇବ ନାହିଁ,
ବୋଲି କେତେ କାନ୍ଦୁ ବିକଳ ହୋଇ । ମୋ ବସମାଲୀ ।
ମଣ୍ଡିବି ବୋଲି କାନ୍ଦ କହ । ମୋ ବସମାଲୀ । ୧୭ ।
ନାଗେଶ୍ୱରଙ୍କୁ* ବିକଳ,
ଚନ୍ଦନଥର ପାଣି ଛଡ଼ାଇ ଥିଲି । ମୋ ବସମାଲୀ ।
ତୋର ଦଶା କଟିଯିବ ବୋଲି । ମୋ ବସମାଲୀ । ୧୮ ।

* ମହାଦେବଙ୍କ ନାମ ।

ମହାଦେବଙ୍କ ପଥର,
ନ ଶୁଣିଲେ ସେହୁ ଗୁହାରି ମୋର । ମୋ ବସମାଳୀ ।
ଦୟା ରହିଲା ନାହିଁ ତାଙ୍କର । ମୋ ବସମାଳୀ । ୧୯ ।

ତୋର ବଡ଼ବାପା ଭାଇ,
ମରିଥିଲେ ମା'ଙ୍କେ କଟକେ ଯାଇ । ମୋ ବସମାଳୀ ।
ଶେଷେ ଡାକ୍ତର ଔଷଧ ଖାଇ । ମୋ ବସମାଳୀ । ୨୦ ।

ସେକଥା ସୋଟରୁ ମୁହିଁ,
ସଙ୍ଗେ ନେବ କୁତ ମନ୍ତ୍ରୁ ନ ଥାଇ । ମୋ ବସମାଳୀ ।
ମୋ ସଙ୍ଗେ ଗଲୁ ଗୋଡ଼ାଇ । ମୋ ବସମାଳୀ । ୨୧ ।

କୁକ୍ଷଣେ କଟକ ନେଲି,
ସୁନା ଝିଅମାନ୍କୁ ହରାଇ ଦେଲି । ମୋ ବସମାଳୀ ।
ମଣିହରା ଫଣିପରି ହେଲି । ମୋ ବସମାଳୀ । ୨୨ ।

ହରାଇ ଚନ୍ଦ୍ରପରି,
ଦିଶୁଥାଏ ମୋତେ ମୁଖ ତୋହରି । ମୋ ବସମାଳୀ ।
ତୋତେ ଦେଖିଣ କଷ୍ଟ ପାଶୋରି । ମୋ ବସମାଳୀ । ୨୩ ।

ଔଷଧ ଖାଇଲୁ ବେଳେ,
ଝର ଝର ନେତ୍ରୁ ଲୋତକ ଝରେ । ମୋ ବସମାଳୀ ।
ମହାଦେବଙ୍କୁ ଡାକୁ ବିକଳେ । ମୋ ବସମାଳୀ । ୨୪ ।

ଔଷଧ ଖାଇବା ପାଇଁ,
କେତେ ନାର ଖାର ହୋଇଲୁ ତୁହି । ମୋ ବସମାଳୀ ।
ବିକଳରେ ଔଷଧରୁ ଯାଇଁ । ମୋ ବସମାଳୀ । ୨୫ ।

କେତେ ଡାକ୍ତର ଦେଖିଲେ,
କେହି ତ ରୋଗକୁ ଚିହ୍ନି ନ ଥିଲେ । ମୋ ବସମାଳୀ ।
ଶେଷେ ଦେଶୀ ଚିକିତ୍ସା କରିଲେ । ମୋ ବସମାଳୀ । ୨୬ ।

ଭଲ ହୋଇବୁ ବୋଲଣି,
କେତେ ଆଶା ମନେ ଥିଲି ପୋଷିଣି । ମୋ ବସମାଳୀ ।
କ୍ଷଣକେ ବିଧାତା ଦେଲା କଷଣ । ମେ ବସମାଲୀ । ୨୭ ।
ଅଗୃଧ୍ୟ* ଔଷଧ ଖାଇ,
ଦିନୁ ଦିନୁ ଗଲୁ ଦୁର୍ବଳ ହୋଇ । ମୋ ବସମାଳୀ ।
କିଛି ତ ଖାଇଲୁ ନାହିଁ । ମେ ବସମାଲୀ । ୨୮ ।
ତାଙ୍କ ପାରୁ ପରିଯତ୍ନେ,
ଶତଚେଷ୍ଟା କଲେ ରଖିବେ ତୋତେ । ମୋ ବସମାଳୀ ।
ସବୁ ଆଶା ବିଫଳ ଭୁଇଁତେ । ମୋ ବସମାଲୀ । ୨୯ ।
କବଗଜଡ ହୁଟିଲା,
ଦିନୁ ଦିନୁ ଦେହ ବଳାଇ ଗଲା । ମୋ ବସମାଲୀ ।
ଛୋଟା ମାଇନା ପ୍ରାୟ ହୋଇଲୁ । ମୋ ବସମାଲୀ । ୩୦ ।
ମୃତ୍ୟୁ ଟଳିବନ ଥାଇଁ,
ମାଙ୍କଡ଼ ରୂପରେ ସେ ପ୍ରେତ ଯାଇଁ । ମୋ ବସମାଳୀ ।
ଅସିଲେ ତୋତେ ଗୋଡ଼ାଇ । ମୋ ବସମାଲୀ । ୩୧ ।
ପ୍ରାଣର ବଳକେ ତୁହି,
କାନ୍ଦ କରି ପକାଇଲୁ କୁଣ୍ଢାଇ । ମୋ ବସମାଳୀ ।
ବଡ଼ ମା' ତୋଲେ ଥାଉ ଟଣାଇ । ମୋ ବସମାଲୀ । ୩୨ ।
ସଙ୍କଗ୍ରସ୍ତ ଭଳଗତ,
ମାଆ ମୋର ଟିକେ ଶୋଇ ନାହାନ୍ତ । ମୋ ବସମାଲୀ ।
କାସ ଉଠି ହୋଇଲା ପାହାନ୍ତ । ମୋ ବସମାଲୀ । ୩୩ ।
ତୋର ବଡ଼ ମା' ପାଇଁ,
ବୃନ୍ଦାବତୀ ପାଖେ ଜଣାଉ ଥାଇ । ମୋ ବସମାଲୀ ।
ମୁହିଁ ତୋତେ ସଙ୍ଗେ ବସିଥାଇ । ମୋ ବସମାଲୀ । ୩୪ ।

* ଡଡବ୍ଲଜ ।

ମୁଣ୍ଡ ବାଡେଇଲ ଯହୁଁ,
ଫାଟିଯିବ ବୋଲି କହିଲୁ ତହୁଁ । ମୋ ବସମାଳୀ ॥
ପୁଣି ବାପାଙ୍କୁ ଡାକିଣ କହୁ । ମୋ ବସମାଳୀ । ୩୫ ।
ମାଥ ସେତିକି ବେଳରୁ,
ବୋଉ ବଡ଼ମାଙ୍କୁ ଅନ୍ତର କଲୁ । ମୋ ବସମାଳୀ ॥
ବାପାଙ୍କୁ ଘେନ ଶୋଇଲୁ । ମୋ ବସମାଳୀ । ୩୬ ।
ଗୁହ ଲାଗିଯିବ କହି,
ଗୋଡ଼ଟେକ ମା'ଲେ ଦେଲୁ ପକାଇ । ମୋ ବସମାଳୀ ॥
ଶେଷଦନ ତୋର ଅଟେ ସେହି । ମୋ ବସମାଳୀ । ୩୭ ।
ଦୋରନ୍ଧା ଭିତ ବସିଲ,
ତନ୍ନଟଣ ବାଲି ହୋଇଣ ଗଲା । ମୋ ବସମାଳୀ ।
ତାହା ତ ଖୋଇ ନ ଦେଲା । ମୋ ବସମାଳୀ । ୩୮ ॥
ଶେଷରେ ବିରକ୍ତ ହୋଇ,
ଗୁଡ଼ି ସେ ଆସିଲୁ କବାଟ ଦେଇ । ମୋ ବସମାଳୀ ॥
ଶିବ ରଖିବେ ବୋଲିଣ କହି । ମୋ ବସମାଳୀ । ୩୯ ॥
ମୁଣ୍ଡ ତ ବାଡେ଼ଇ ଦେଲୁ,
ମହାଦେବଙ୍କୁ ତ କେତେ ଡାକିଲୁ । ମୋ ବସମାଳୀ ॥
ପୁଣି ପାଦୁକ ମାଗି ଖାଇଲୁ । ମୋ ବସମାଳୀ । ୪୦ ।
ତୋ ବୋଉ ବଡ଼ମା ଦୁଇ,
ଦୁଆର ବନ୍ଧରେ ବସି ଅନାଇ । ମୋ ବସମାଳୀ ॥
ଶିବ ଅଇଲେ କୋଳେ କି ଯାଇଁ । ମୋ ବସମାଳୀ । ୪୧ ॥
ଦୃଢ଼ ବିଶ୍ୱାସ ତୋହର,
ବଞ୍ଚାଇବେ ବୋଲି ସେ ନାଗେଶ୍ୱର* । ମୋ ବସମାଳୀ ।
ତୋର କର୍ମକୁ କହିଲେ ପଥର । ମୋ ବସମାଳୀ ॥ ୪୨ ।

---

* ମହାଦେବଙ୍କ ନାମ ।

ବ୍ରାହ୍ମଣ କାଉଣି ହେଲା,
ଟେକିଟେକି ଟେକଲପଡି ଶୁଆ ବସିଲା । ହେ ମହାଦେବ ।
ଠାବେ ଠାଉକି ଜଣାଣ ହୋଇଲା । ହେ ମହାଦେବ । ୪୩ ।

ମୋ ବଂଶ ଧାଡ଼େଣ୍ଡ୍ରେ ବୁଲିବି,
ବୃନ୍ଦଅଁ ଉପରେ ଝଣା ହୋଇବ । ହେ ମହାଦେବ ।
ତୁମ୍ଭ ପାଖରେ ଭକ୍ତ ମାଗିବ । ହେ ମହାଦେବ । ୪୪ ।

ବୃଷଭ ସ୍ତୁତିବ ବୋଲି,
ନାସ୍ତୁମ କରି ମନରେ କହିଲ । ହେ ମହାଦେବ ।
ଦୁତ ବର୍ଣ୍ଣାଶିତ ରଖିଥିଲ । ହେ ମହାଦେବ । ୪୫ ।

ତୁମ୍ଭଙ୍କୁ ମୁଁ ଆଶ୍ରାକଲି,
ଗର୍ବ ହିଂସା ନ କରିବ ବୋଇଲ । ହେ ମହାଦେବ ।
ସ୍ତ୍ରୀହମାନଙ୍କୁ ତ ନ ପୂଜିଲ । ହେ ମହାଦେବ । ୪୬ ।

ତୋତେ ମୁହିଁ ନ ଦୂଷଣ,
ଘହାପୂଜା ଯେବେ ଥାନ୍ତ କରଣ । ହେ ମହାଦେବ ।
ବଞ୍ଚି ରହିଥାନ୍ତା ବଂଶ ପ୍ରାଣ । ହେ ମହାଦେବ । ୪୭ ।

ସନ୍ନିପାତ ହେଲା ଯନ୍ତୁଁ,
ବାଘୁଁଅଣୀ ପର ଗଡ଼ିଲୁ ତନ୍ତୁଁ । ମୋ ବଂଶମାଳୀ ।
ନଅଁ ଲଗାଇ ଯେଙ୍କଲେ ତନ୍ତୁଁ । ମୋ ବଂଶମାଳୀ । ୪୮ ।

ଦଣ୍ଡିକ୍ତି ଗଲା ତୋ ଭାଇ,
କୋବରାଜଙ୍କୁ ତ ଡାକିଲା ଯାଇଁ । ମୋ ବଂଶମାଳୀ ।
ସେଙ୍କ ବଟିକା ଦେଲେ ଘଠାଇ । ମୋ ବଂଶମାଳୀ । ୪୯ ।

ବଟିକା ମୀଳିଲା ନାହିଁ,
ଦେବକି ଦେଲ ଗୋଲ୍ଡି ପାଣି ବୁହାଇ । ମୋ ବଂଶମାଳୀ ।
ଏହି ଥିଲା ଶଙ୍କି ଗଲା ପାହି । ମୋ ବଂଶମାଳୀ । ୫୦ ।

ଦାରୁଣ ନିଶା ପ୍ରଭାତ,
ମୋ ପାଇଁ ବେଦନ ହେଲା ଅଗତ । ମୋ ବସମାଳୀ ।
ହୃଦେ ଦେଲା କଷଣ ବହୁତ । ମୋ ବସମାଳୀ । ୫୧ ।
ଗୋଡ ଠାରୁ ମୁଣ୍ଡ ଯାଏ,
ଥର ଉଠେ ତୋର ସେ ଯନ୍ତ୍ରଣାଏ । ମୋ ବସମାଳୀ ।
ଦେଖି ନୟନରୁ ନୀର ବହେ । ମୋ ବସମାଳୀ । ୫୨ ।

ସନ୍ନିପାତ ଯାହା ହେଲା,
ଦାରୁଣ ବନ୍ଧିତ କି ଦଣ୍ଡ ଦେଲା । ମୋ ବସମାଳୀ ।
ଘଡ଼ି ଘଡ଼ିକେ ବାତ ଉଠିଲା । ମୋ ବସମାଳୀ । ୫୩ ।

ଏତେ କଷ୍ଟ ପାଉ ଥାଉ,
ବାପା ବୋଉ ବୋଲି ଡାକଣ ଦେଉ । ମୋ ବସମାଳୀ ।
ପୁଣି ନାଗନାଥ ବୋଲି କହୁ । ମୋ ବସମାଳୀ । ୫୪

ବନ୍ଧୁ ବାନ୍ଧବ ସନ୍ନତେ,
ତୋ ସେବାରେ ମା'ଲୋ ଲଗିଲେ କେତେ । ମୋ ବସମାଳୀ ।
ଦଣ୍ଡ ରହିଲା ନାହିଁ ଜଗତେ । ମୋ ବସମାଳୀ । ୫୫ ।

ଆକୁଳ ଦେଖିଣ ଭାଇ,
ରଜନୀ ବାବୁଙ୍କୁ ଡାକିଲା ଯାଇଁ । ମୋ ବସମାଳୀ ।
କ୍ଷଣି ଆସିଲେ ଦଉଡ଼ି ସେହୁ । ମୋ ବସମାଳୀ । ୫୬ ।

ତାଙ୍କର ଔଷଧ ଖାଇ,
ଟିକେ ବଢେ ମା'ଲୋ ପଡ଼ିଲୁ ଶୋଇ । ମୋ ବସମାଳୀ ।
ଅଉ କାନ୍ଦଣା ଶୁଭିଲା ନାହିଁ । ମୋ ବସମାଳୀ । ୫୭ ।
ପୁଣି ଔଷଧ ଖାଇକୁ,
ଖାଇ ମା'ଲୋ କେତେ ବକିଲ ହେଲୁ । ମୋ ବସମାଳୀ ।
ଜଗ ଦେଖେଇ କେତେ ଗଡ଼ିଲୁ । ମୋ ବସମାଳୀ । ୫୮ ।

ଜଭ ଯାଉଥାଏ ଶୁଖି,
ଦେଖି ଯାହା ଆଖି ନ ଗଲା ଫୁଟି । ମୋ ବସମାଳୀ ।
ଭୋଲ ଧଇଲୁ ଡେରାରେ ଯାଉଁଛି । ମୋ ବସମାଳୀ । ୬୯ ।
ଦିନ ଦିନ କର କଥା,
ପଡ଼ି ହୃଦେ ମନେ ଦେଉଛନ୍ତି ବ୍ୟଥା । ମୋ ବସମାଳୀ ।
ଯିଣ୍ଡେ ପ୍ରାଣ ରହୁଅଛି ବୃଥା । ମୋ ବସମାଳୀ । ୭୦ ।
ପାର ଶେଜ ମାଠ ଜେଟେ,
ଛନ୍ଦିରେତ ନିଦ ନ ଆସେ ତୋଠେ । ମୋ ବସମାଳୀ ।
ଏବେ ରହିଲୁ ମା'ଆ କଣ୍ଟି ନେ । ମୋ ବସମାଳୀ । ୭୧ ।
ଦିନେ ସ୍ୱପନ ଦେଖିଛି,
କଟକ ନଈରେ ବୁଡ଼ି ଯାଉଛି । ମୋ ବସମାଳୀ ।
ବାଲ ଟେକଣ ଡୋର ଧରୁଛି । ମୋ ବସମାଳୀ । ୭୨ ।
ସେ-ସ୍ୱା ଫଳିଲା ଫଟେଲ,
ଅବଶେଷେ ପଡ଼ି ଗ୍ରାହ କବଳେ । ମୋ ବସମାଳୀ ।
ପ୍ରାଣ ହରାଇଲୁ କଟକରେ । ମୋ ବସମାଳୀ । ୭୩ ।

—)( ସମାପ୍ତ । )(—

Printed by H. K. Das, Chandrodaya Press, Cuttack.

ଶ୍ରୀମତୀ କୁନ୍ତଳାକୁମାରୀ ଦେବୀଙ୍କ
ପ୍ରଣୀତ ଓ ପ୍ରକାଶିତ ।
ପ୍ରଥମ ସଂସ୍କରଣ ।

Printed by H. K. Das,
Chandrodaya Press,
CUTTACK.
1930.

ମୂଲ୍ୟ ୪ ୦ /୬ ଛଅପଇସା ମାତ୍ର ।